# ଆରତ ଧ୍ୱଂସନ



ଓଡ଼ିଶା କୋହେନୂର ପ୍ରେସ୍ ପ୍ରୋପ୍ରାଇଟରଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ



RARA

ପ୍ରା ପ୍ତି ସ୍ଥା ନ :—


ଓଡିଶା କୋହେନୂର ପ୍ରେସ୍
ପୁସ୍ତକ ଭଣ୍ଡାର

ଚୌଧୁରୀ ବଜାର ପୋ: ଅ: କଟକ


ମୂଲ୍ୟ ୦ ॰ / ଏକଅଣା

# ଆରତଧ୍ୱଂସନ

## ପ୍ରଥମ ଛାନ୍ଦ

କୃପାସିନ୍ଧୁ ଦୀନବନ୍ଧୁ ଅଘତମଇନ୍ଦୁ ଅହେ ଆଭଙ୍ଗନାଶନ ।
ହେ ନନ୍ଦନନ୍ଦନ ପାଦ କର ଧ୍ୟାନ କେବଣ ପତିତଜନ ।
ମହାପ୍ରଭୁ ହେ । ୧ ।

ଦୀନ ଅପରାଧୀ ଦୁଃଖଜଳଧିରେ ପଡ଼ି ବିସୁରଇ ମନ ।
ଦୁଃଖ ସନ୍ତାପ ଖେଦଭାବ ସମ୍ମୁରେ କରିବାକୁ ନିବେଦନ ।
ମହାପ୍ରଭୁ ହେ । ୨ ।

## ପଦି । ଛପୋଇ ବାଣୀ

ନୀଳନବଘନ ସୁନ୍ଦରବଦନ ଶ୍ରୀମୁଖମାଧୁରୀ ଅତି ଶୋଭା ।
ଶିରେ ଶିଖୀଚୂଳେ ମାଳତୀ ବଉଳେ ଝଙ୍କାରି ମଧୁପକୁଳ ପ୍ରଭା ॥
ଅଳକାବଳୀ କି ଅଳି-ଶିଶୁପନ୍ତି ଶ୍ରୀମୁଖ ନବନଳୀନ ଜାଣି ।
କପାଳେ ଚନ୍ଦନବିନ୍ଦୁ ଶୋଭାବନ ଉଦେ ହୋଇଛି କି ନିଶାମଣି ॥
ଭ୍ରୂଲତା ସୁନ୍ଦର କି ଏ କାମଙ୍କରକୋଦଣ୍ଡ ରଖିଛି ପ୍ରତେ ହୋଏ ।
ବିକଚକମଳ ପ୍ରାୟ ବେନଡୋଳ ଲହରି ଖେଳଇ କର୍ଣ୍ଣ ଯାଏ ॥
ମନୋହର ନାସାପୁଟେ ସୁଘଟିତ ବର୍ତ୍ତୁଳ ଗଜମୁକୁତାବର ।
ବିମ୍ବଫଳ-ଜ୍ୟୋତି ଅଧରପଲ୍ଲବ ମନ୍ଦହାସ ମୋହେ ତନପୁର ॥
ମକରକୁଣ୍ଡଳ କି ରବିମଣ୍ଡଳ କର୍ଣ୍ଣେ ଝଟକନ୍ତି ତେଜ ଘେନି ।
ଭକତ-ଦୁଃଖ ତିମିର ନାଶିବାକୁ ଉଦେ ହୋଇଛନ୍ତି କି ରବି ବେନି
ଚାରୁକଣ୍ଠେ ଶୋହେ ମୁକୁତା କନକକଣ୍ଠୀ ମିଶି ମିଶି ବନମାଳ ।
କଉସ୍ତୁଭମଣି ଗୁରୁ ଭାର ଜାଣି ଅନୁପମର ତରଙ୍ଗକୁଳ ॥

ମତ୍ତକରିବର-କରକୁ ନିନ୍ଦଇ ବୃଷାଳ ବଳନ ବାହୁବେନି ।
କଙ୍କଟ ବାହୁଟୀ ମୁଦ୍ରିକା ଅଙ୍ଗୁଷ୍ଠିଅଶେଷ ଶୋଭା ମୁରଲୀ ଧେନି ॥
ହୃଦୟ ବିସ୍ତାର ଶ୍ରୀବତ୍ସପଦୁର ଚର୍ଚ୍ଚିତ ଚନ୍ଦନ ମୃଗମଦେ ।
କଟିରେ କିଙ୍କିଣୀଶ୍ରେଣୀ କଣି କଣି ପୀତପଟ ସୌଦାମିନୀ ଜଦେ ॥
ପଦ୍ମଯୁଗଳେ ନୂପୁର ମଞ୍ଜୁଳ ରୁଣିତ ଶବଦେ ଧ୍ୱନି କରେ ।
ଅରୁଣ ଚରଣତଳେ ବିରାଜିତ ଅଷ୍ଟାଦଶଚିହ୍ନ ଯହିଁ ଧରେ ॥
ଚତୁର୍ବର୍ଗମଧୁ ଯହିଁରୁ କ୍ଷରଇ ବାଞ୍ଛାକଳ୍ପତରୁ ବୋଲି ଯାରେ ।
ପତିତେ ସିଦ୍ଧ ଦୁର୍ବୁଦ୍ଧି ଅପରାଧୀ ନିତ୍ୟାନନ୍ଦ ବୋଲେ ରଖ ବାରେ ॥

—*—

## ଦ୍ୱିତୀୟ ଛାନ୍ଦ

ଅହେ ଗୋପୀନାଥ ଅନାଥର ନାଥ ଅହେ ଆତଙ୍ଗନାଶନ ।
ଶରଣରକ୍ଷଣ ଅହେ ଦୀନଜନବନ୍ଧୁ କଷ୍ଟନିବାରଣ ।
ମହାପ୍ରଭୁ ହେ ॥
ଅରକ୍ଷରକ୍ଷକ ଅହେ ମହାବାହୁ ଅପକ୍ଷପକ୍ଷ ଗୋସାଇଁ ।
ଅପ୍ରାଧଭଞ୍ଜନ ଅହେ ଅନ୍ତର୍ଯ୍ୟାମୀ ଜଗନ୍ନାଥ ଭାବଗ୍ରାହୀ ।
ମହାପ୍ରଭୁ ହେ ।୨।

### ପଦି

ପୂତନା ଶକଟା-ପ୍ରାଣହର ଅହେ ଗୋପର ବିପଦାନ୍ଧର ହର ।
ତୃଣାବର୍ତ୍ତ ଉଡ଼ା ବାରୁସ୍ୱକଚଡ଼ା କେଶିପିଣ୍ଡମନ୍ଥା ଦଇତ୍ୟାର ॥
ବୃଷଭମର୍ଦ୍ଦନ ଅହେ ଜନାର୍ଦ୍ଦନ ବାମକରେ ଗିରିବରଟେକା ।
ଅଘାସୁର ପୋଡ଼ା ଯାମଳା ଉପୁଡ଼ା ବେନିଫାଳ କଲ କରେବକା ॥
ଦାବାନଳପିଆ ଗୋବତ୍ସାସ୍ତୁ ଛଡ଼ା ଅହେ ଶଙ୍ଖଚୂଡ଼ମଣି ହର ।
କୁବଳୟ ମଲ୍ଲ ବିନାଶନ କଲ ବାଦେ ହରାଇଲ ସୁନାସୀର ॥
କାଳୀୟଗଞ୍ଜନ ଅହେ ତାଳବନ ଧେନୁକାପରାଣହର ହର ।
ପ୍ରଲମ୍ବା ବିନାଶ ବନଅଗ୍ନି ଗ୍ରାସ କରି ଗୋପଙ୍କୁ ସଙ୍କଟୁ ତାର ॥



ଅହେ କଂସଦମନହଂସ ବନ୍ଦିତ ସୁରଗଣ ପଦ୍ମବନ୍ଧୁ ନାଥ ।
ଅହେ କଉରବବଳ ହତକାରି ହୋଇଲ ସାରଥି ପାର୍ଥରଥ ॥
ଅହେ ଗଜଇନ୍ଦ୍ର କଷ୍ଟନିବାରଣ ଚକ୍ରପ୍ରହାରଣ ମହାବାହୁ ।
ଅହେ ଗର୍ଭଏଣୀ ଦୁର୍ଗତିନାଶନ ଦ୍ରୌପଦୀ-ବିପଦଚନ୍ଦ୍ର ରାହୁ ॥
ଅହେ ପ୍ରହ୍ଲାଦ ବିଷମ ପ୍ରମାଦ ବିପଦକରୀନ୍ଦ୍ର-କଣ୍ଠୀରବ ।
ଅହେ ଅଧ୍ରୁବ ଧ୍ରୁବକୁ ଧ୍ରୁବପଦଦାତା ତୁମ୍ଭେ ଅଟ ବାସୁଦେବ ॥
ଅହେ ସୁଗ୍ରୀବର କେଶତରୁବର ପ୍ରବଳମତ୍ତଭ ଚକ୍ରଧର ।
ଅହେ ବିଭୀଷଣ ଶରଣରକ୍ଷଣ ରାବଣଦୂଷଣ ନାଗଳର ॥
ଅହେ ଅଜାମିଲକଲ୍ମଷ କମଳବନ ଶିଶିର କରୁଣାକର ।
ସୁଦାମ ଦାରିଦ୍ର୍ୟ କଷ୍ଟମାନହର ତୃଷିତଗୃହକ ଜଳଧର ॥
ଅହେ ଭରତଆପତ୍ତି ଉଦ୍ଧାରଣ ଶୋଣିତସିନ୍ଧୁ ବିପଦୁଁ ତାର ।
କହେ ନିତ୍ୟାନନ୍ଦ ଅହେ ଆଦିକନ୍ଦ ଶୁଣିମା ଜଣାଣ ବାରେ ହର ॥

—*—

## ତୃତୀୟ ଛାନ୍ଦ

ତୁମ୍ଭପରା ପ୍ରଭୁ ଥାଉଁ ଥାଉଁ ମୁଁ ଯେ ବୁଡ଼ିଲି ବିପଦଜଳେ ।
ଏତେବେଳେ ପ୍ରଭୁ ଡାକ ନ ଶୁଣୁଛ ଯେତେ ଡାକିଲେ ବିକଳେ ।
ମହାପ୍ରଭୁ ହେ ॥
ସ୍ଥଳମୀନ ଯେହ୍ନେ ମିହିର ତେଜରେ ତେମନ୍ତ ହେଲାଣି ଦଶା ।
ଏଥିରେ କାହିଁତେ କରୁଣା ନୋହୁଛ ମୁଁ ଯେ କରିଛି ଭରସା ।
ମହାପ୍ରଭୁ ହେ ।୨।

### ପଦି

ବିପଦଧାଡ଼ି ଯେତେ ମାଡ଼ିପଡ଼ୁଛି କେତେହେଁ କହିବ ମନେହେଜ ।
ସିଂହ ମୃଗ ଆଗେ ପରି ତରଙ୍ଗେ ଧଇର୍ଯ୍ୟବନ୍ଧ ତା ଯାଉଛି ଭାଜି ॥
ଯେତେରୂପେ ଦଣ୍ଡଦୁଃଖ ଦେଉଅଛ କହିବାକୁ ମୋତେ ଆସୁନାହିଁ
ଯେତେ ଥିଲା ଆଶ ଅହେ ପୀତବାସ ଏବେ ତୁମ୍ଭ ନାରାଣକୁ ଚାହିଁ ॥

ପ୍ରଭୁ ହୋଇ କୃପା ନ କରୁଛ କିମ୍ପା ଦୀନପତିତଜନଙ୍କଠାରେ ।
ଅତହିଁ ନାରାଣପଣ କରିବାରେ ଭାସିଗଲି ଶୋକନଦୀଧାରେ । ୩ ।
ଥାଉଁ ପ୍ରଭୁପଣ କରୁଣାକୃପଣ ହେବାରୁ ନୀତକି ନ ଆସଇ ।
ବୁଡ଼ୁ ଥିଲେ ଭେଲା ତହିଁ କଲେ ହେଲା ଦାରୁଣପଣ କି ଏ ନୁହଇ
କରୁଣାନାବିକ ନାବ ଥାଉଁ କୂଳେ ଖେଦ ଜଳଧିରେ ଗଲି ବୁଡ଼ି ।
ତରଳ ତରଙ୍ଗ ଭଉଁରି ପ୍ରଖର ଏମନ୍ତ ନଦୀରେ ଦେଲେ ଗୁଡ଼ି । ୪ ।
ମୁଁ ଯେ ମଲେ ମଲି ଭାସିଗଲେ ଗଲି ତୁମ୍ଭଙ୍କୁ ସିନା ଏ ଅପ୍ପଦର ।
ତୁମ୍ଭନାମ ଧରି ହେବା ଏତେସରି ଜଗତେ କିବା ବୋଲିବେ ନର ॥
ମୋତେ ଏ ଦୁର୍ଗତି ଯେତେ ନ ବାଧଇ ତୁମ୍ଭ ନିନ୍ଦା ଲୋକେ ମରୁଅଛି
ପୂର୍ବର କରୁଣା ଏବେ ଦେଖି ଊଣା ନଶୀଦବା ମନେ ଗୁଣୁଅଛି ।
ନାନାରୂପେ ଶାସ୍ତି ଦେଇ ଦୁଃଖହସ୍ତୀ ଦନ୍ତରେ ଗୁନ୍ଥିବା ମନକଲା ।
ବିପତ୍ତି-କରୀନାଶନ ତୁମ୍ଭ ବାନା କିମ୍ପାଇଁ ନୀଳାଦ୍ରୁ ସିଂହହେଲା ।୮।
ଧଇର୍ଯ୍ୟ-କମଳବନକୁ ମୋହର ଧ୍ୱଂସି ପକାଉଛି ପ୍ରବଳରେ ।
ରକ୍ଷ ରକ୍ଷ ପ୍ରଭୁ ପ୍ରମତ୍ତକେଶରୀ ବୋଲି ଜଣାଉଛି ବିକଳରେ । ୯ ।
କେବେହେଁ କରୁଣାନଦୀ ନ ବହିଲା ବଢ଼ିଲା ସଂକଟଗିରିବର ।
କହେ ନିତ୍ୟାନନ୍ଦ କର୍ମହୀନ ମନ୍ଦ ସଦୟକୂଳିଶେ ନାଶ କର ।୧୦।



## ଚତୁର୍ଥ ଛାନ୍ଦ ।

ପତିତ ଜନଙ୍କୁ ଉଦ୍ଧାରିବାପାଇଁ ଉଡାଉଅଛ ପତାକା ।
ବାହୁ ଟେକି ତୁମ୍ଭେ ବସି ଗୃହୁଁ ଗୃହୁଁ ଡପତ୍ତି କରୁଛି ଡକା ।
ମହାପ୍ରଭୁ ହେ । ୧ ।
ନାଶଗଲେ ତୁମ୍ଭେ ପଛେ କି କରିବ କରୁଣା ଭଣ୍ଡାର ଫେଇ ।
ଦୁଃଖୀ ଗଲେ ନାଶ ଅର୍ଜିବ କି ଯଶ ପଛେ ଚତୁର୍ବର୍ଗ ଦେଇ ।
ମହାପ୍ରଭୁ ହେ । ୨ ।



ମଡି

ଘୋରନବଘନ ଥାଉ ଯେବେ ଦୀନଚାତକ ଜୀବନ ହରାଇବ ।
ସମୁଦ୍ରେ ବରଷି ଘୋର ଜଳରାଶି ଘୃତକବନ୍ଧୁ କି ବୋଲାଇବ ।୧।
ମାଳତୀ ବକୁଳ ବିକଚକମଳ ବନ ଥି ବ ଅଳି ଯିବେ ସରି ।
ପୂର୍ଣ୍ଣସୁଧାକର ଅନାଇଁ ଚକୋର ମାଳିକା ଯେବେ ମରିବେ ଝୁରି ।୨।
କଳ୍ପଲତାତଳେ ଥାଇ ଯେ ନ ଫଳେ ନିରାଶ ହୋଇବା କେତେଲାଜ
ରତ୍ନାକର ହୋଇ ରତ୍ନରଙ୍କ ଯହିଁ ଏ କଥା କେମନ୍ତ ଦେବରାଜ ।୩।
ଥାଉଁ ଗଙ୍ଗାକୂଳେ ପରାଣ ବିକଳେ ତୃଷାରେ ଯେବେ ହାରିବ ପ୍ରାଣ ।
ଦିନମଣି ଥିବ ଅନ୍ଧାର ହୋଇବ ଏକଥା ପ୍ରଭୁ ମନକୁ ଆଣ । ୪ ।
ସାମନ୍ତ ଯେ ଚତୁର୍ବର୍ଗଅଧିକାରୀ ଲକ୍ଷ୍ମୀ ପରଚୁରୀ ଥିବେ ହୋଇ ।
ଏମନ୍ତ ସାମନ୍ତ ଆଶ୍ରାକରି ଭୃତ୍ୟ ଭିକ୍ଷା ମାଗୁଥିବ ଦୁଃଖପାଇ । ୫ ।
ଏଥୁଁ ଅଧିକ କି ଅଛି ଲୋକହସା ଆଉ କି ରହିଲା ପ୍ରଭୁ ଆଣି ।
ଝମକାଲି ସିଂହପ୍ରାପ୍ତ ଝମକିବା ବ୍ୟର୍ଥ ଧରିବା ଚକ୍ରପାଣି । ୬ ।
ଦୀନବନ୍ଧୁ ବୋଲି ନାମ ଯେ ବହିଛ ଏହା ନ ଚେତ କି ଭାବଗ୍ରାହୀ ।
ଏ ନାମ ଏବେ ଏଣିକି ନ ବହିବ ଚକ୍ରପରୁ ନେତ ଥୁଅନେଇ ।୭।
ତେବେ ତୁମ୍ଭଙ୍କୁ କେ କାହିଁକି କହିବ କର୍ମ ଆଦରି ସହିବ ଦୁଃଖ ।
ନିରାଶ ଜଳଧି ତୁମ୍ଭନାମ ସିନ୍ଧି ଜଗତରେ ବାଜିଯାଉ ଡାକ । ୮ ।
ଆଉ ଭୁବନରେ ଠାକୁର ଖୋଜିବା ତୁମ୍ଭପରି କେହି ଥିଲେ ଜଣେ
ଦୁଃଖୀଲୋକଙ୍କର ଦୁଃଖ ହରୁଥିବେ କୃପାବଲୋକନ ନେତ୍ର କୋଣେ ॥
ସୁଦର୍ଶନ ନାମେ ଚକ୍ର ବହିଥିବେ ଟେକିବାହୁରେ ଦକ୍ଷିଣକରେ ।
କହେ ନିତ୍ୟାନନ୍ଦ ଅପରାଧୀମନ୍ଦ ମୋହର ଶରଣ ତାଙ୍କଠାରେ ।୧୦।



## ୫ମ ଛାନ୍ଦ ।

କଳୁଷୀଲୋକଙ୍କୁ ଦୁଃଖଶୋକପଙ୍କୁ ପୂର୍ବେ ଉଦ୍ଧାରିଛ କେତେ
ଆରତୀ ମନବାଞ୍ଛିତ ଘନ ହୋଇ ବରଷିଛ କେତେ କେତେ
ମହାପ୍ରଭୁ ହେ । ୧ ।

ତାହା ଶୁଣି ମୁଁ ଯେ ମନ ଦମ୍ଭ ବଳି ନ ଡ଼ରଇ ବିପତ୍ତିକି ।
ବୋଲଇ କେତେ ବିପତ୍ତି ହରିଛନ୍ତି ଏ ଅବା କେତେମାନ କି ।
ମହାପ୍ରଭୁ ହେ ।୨।

ପଦି

ଅତଙ୍କେ ତରଙ୍ଗୀ ହୋଇଣ କୁରଙ୍ଗୀ ଭୟେ ଡାକ ଦେଲା ଯେତେବେଳେ
କାହିଁ ଥାଇଁ ପ୍ରଭୁ ତାହା ଶୁଣିଥିଲ ପ୍ରସନ୍ନ ହୋଇଲ ତେତେବେଳେ ।
କାହିଁ ଥିଲା ଘନ ପ୍ରବଳ ପବନ ବଜ୍ର ସର୍ପ କାହିଁ ଥିଲ ରଖି ।
ଏକାବେଳକେ ସଙ୍କଟ କାଟିଦେଲ ନବଘନେ କି ଭେଟିଲା ଶିଖୀ ॥
ଦେଖି ହରିଣୀ ହରଷ ବିକଶିଲା ନାଟକଲା ବେନି ଶିଶୁ ଘେନି ।
କୃପା କଲେ ଏଡ଼େ କୃପା ହିଁ କରିଛ କରୁଣାସାଗର କୃପାଦାନୀ ।୩।
ଗଜରାଜ ଜଳେ କୁମ୍ଭୀର କବଳେ ଆତଙ୍କେ ଡାକିଲା ଆଦିମୂଳ ।
କେତେଦୂରେ ତାହା କେମନ୍ତ ଜାଣିଲ ଚକ୍ରେ ଛେଦିଲ କୁମ୍ଭୀରଶିର
ଅହେ ପୀତାମ୍ବର ସଞ୍ଚିତ ଅମ୍ବରରାଶି ଜାଗି ରଖିଥିଲ କାହିଁ ।
ଚନ୍ଦ୍ରବାମାନକେ ଲଜ୍ଜାସିନ୍ଧୁ ହରି ଦ୍ରୌପଦୀଙ୍କି ତାହା ଦେଲ ନେଇ
ପଞ୍ଚ ପାଣ୍ଡୁସୁତ ଅନଳରେ ହତ କେମନ୍ତେ ତାହା ପାରିଲ ଜାଣି ।
କାହିଁ ହରିନେଲ କାହିଁରେ ରଖିଲ ଜଗିଥିଲେ କଉରବଶ୍ରେଣୀ । ୬
ଜରାସନ୍ଧ କାରାବନ୍ଦୀ-ରାଜକୁଳ-କମଳବନର ହେଲ ବନ୍ଧୁ ।
ନାରକାଭୁବନ ଭୂପତି କୁମାରୀ କୁମୁଦପନ୍ତି ହରଷ ଇନ୍ଦୁ ।୭।
ବଳେ ଯାଚି ଧନ ଅନ୍ଧକୁ ଲୋଚନ ତୁମ୍ଭେ ଗୋପଦାଣ୍ଡେ ଦେଲ ପରି
ଡାକି ଅସୁନ୍ଦର କୁବଜାକି ସୁନ୍ଦର ତୁମ୍ଭେ କି ନ କଲ ଅପସରି ।୮।
ଗଉତମ ନାରୀ ଅଛ ପରି ତାର ସ୍ୱରୂପ ଦପଦୁ ସ୍ପରଶରେ ।
ପ୍ରହ୍ଲାଦ ଘୋର ବିପତ୍ତି ନାଶିଲ ଦେବରାଜ କଲ ଦେବପୁରେ ।୯।
ସୁଦାମା ଦାରିଦ୍ର୍ୟ କଷ୍ଟକୁ ହରିଲ କଲ କୁବେର ମୁକୁଟମଣି ।
କହେ ନିତ୍ୟାନନ୍ଦ ଏବେ ଏତେ ଛନ୍ଦ କାହିଁକି କରୁଛ କମ୍ବୁପାଣି ।୧୦।

——✿——





ଷଷ୍ଠ ଛାନ୍ଦ ।

ତୁମ୍ଭ ଶୁଣିବାକୁ ମୋହ କହିବାକୁ ସମସ୍ତ ନାହିଁ ମୁରାରେ ।
ତୁମ୍ଭ କୃପା ହେଉ ହେଉ କାହୁଁ କାହୁଁ ବିପତ୍ତି ଦେଉଛୁ ସାରେ ।
ମହାପ୍ରଭୁ ହେ ।୧।
ଦୁଃଖତଟିନୀ ତଟରୁ ହୋଇ ମୋ ପିଣ୍ଡେ ବଳ ନାହିଁ ମୂଳେ ।
ତୁମ୍ଭ ନିରାଶ ପ୍ରବଳପବନରେ ଉପୁଡ଼ୁଛି ମୁଁ ସମୂଳେ ।
ମହାପ୍ରଭୁ ହେ ।୨।

ପଦି

ମୁହିଁ ଗଲେ ନାଶ ତୁମ୍ଭେ କେଉଁ ଯଶ ଲଭିବ ଆହେ କରୁଣାନିଧି
ମଲାପାରେ ଜଳ ଅଧିକରେ ଜାଲି ଫସାରେ କେତେ ରଖିବ ସିଦ୍ଧି ।
ଦୁଷ୍ଟମତ୍ତନାଗ ରହିଥିଲେ ଆଗ କେହି ତା ପୁଚ୍ଛ ଦଅଇ ଚିପି ।
ଧର୍ମନିକି ଗୃହ ଦେବା ବନମାଳୀ ଯେଉଁଠାରେ ଫିରିଥାଏ ଝାମ୍ପି ॥
ପ୍ରବଳପବନ ଘାତେ ରମ୍ଭାବନ ହୋଇଲା ପ୍ରାୟେ ମରୁଛି ଭାଳି ।
କାଳକୁ ସୁହାର ଯେହ୍ନେ ନ ଡେୟ କର ଦୁଃଖୀ ମରୁଥାଇ ଝୁରି ଝୁରି ॥
ଏ ଉଚାପାରଇ ତାକୁ ନ ଶୁଭଇ ସେ କେହ୍ନେ ହରିବ କଷ୍ଟ ତାର
ତେମନ୍ତ ତାର ଯେମନ୍ତ ଗତି ହୋଇବେକ ବେଳ ଏ ମୋ ଦୁଃଖଭାର ।
କୃପଣକୁ ଲୋଭୀ ଥାଇଁ ଯେହ୍ନେ ସେବା ଧରି ନ ଛାଡ଼ଇ ଲୋଭ ବଳେ
ଏତ ନ ଦଅଇ ସେତ ନ ଛାଡ଼ଇ ଲୋଭୀନାଶ ଫଳ ପାଇ କାଳେ ॥
ପ୍ରଭୁଙ୍କୁ କୃପଣ ଡ଼ରେ ନ ବୋଲଇ ଦୁଃଖୀ ଲୋଭପଣ ହୋଏ ସିଦ୍ଧି ।
ପ୍ରଭୁପଣ ଥିଲେ ସବୁହିଁ ସୁନ୍ଦର ଅସୁନ୍ଦର କଥା କଲେ ବିଧି ॥
ହୋଇ କୃପାସିନ୍ଧୁ ବନ୍ଧିବାକୁ ବନ୍ଧୁ ସରବ ବୋଲି ଡ଼ରିବା ଠାରେ ।
ତେବେହେଁ ବୋଲନ୍ତି କରୁଣାସମୁଦ୍ର ବିବେକୀ ମହନ୍ତ ସନ୍ଥ ନରେ ॥
ଦୁଃଖ ଅନ୍ଧକାରେ ନାମ ସୁଧାକର ହୋଇଛ କିରଣ ନ ଛାଡ଼ିଲ ।
ଏମନ୍ତ ନିଷ୍ଠୁର ହୃଦୟ କଠୋର ନିରାଶଘନରେ ଉହାଡ଼ିଲ ॥

ସୁଖସିନ୍ଧୁ ବୋଲି ଶରଣ ମୁଁ ଗଲି ବେଳୁଁବେଳ କରୁଅଛ ବଳେ ।
ପତିତପାବନ ଅପରାଧ ଭଞ୍ଜନ ସତ୍ୟକୁ କିଏ ଛାଡ଼ିଲ ଢାଳେ ॥
ତୁମ୍ଭେ ସତ୍ୟବାଦୀପଣ କଲେ ସିନ୍ଧି ଆଉ କେହି ମର୍ତ୍ତ୍ୟେ ରହିବ କି
କହେ ନିତ୍ୟାନନ୍ଦ ମୂଢ଼ ହୀନ ମନ୍ଦ ଶିତର ସାମନ୍ତ ନୋହିବ କି ॥

—*—

## ସପ୍ତମ ଛାନ୍ଦ ।

ଅପରାଧ ଅବା କଲି ମହାପ୍ରଭୁ କରୁଅଛ ଏତେ ସରି ।
କ୍ଷମାଶୀଳପଣେ ତୁମ୍ଭଙ୍କୁ କେ ସରି ଅଛନ୍ତି ନୀଳାଦ୍ରିକେଶରୀ ।
ମହାପ୍ରଭୁ ହେ । ୧ ।
ପୂର୍ବେ ଶ୍ରୀବତ୍ସବ୍ରାହ୍ମଣ ବକ୍ଷସ୍ଥଳେ ପାଦଘାତ କଲା ନେଇ ।
କୃପା କଲ ଯେତେ ଶୁଣି ଏତେବେଳେ ମୋର ତନୁ ପୁଲକଇ ।
ମହାପ୍ରଭୁ ହେ । ୨ ।

ପଦି

କାଳିନ୍ଦୀଜଳରେ ପାଦକମଳରେ ବିଷଅଗ୍ନି ଜାଳା ଦେଲା କାଳ
କୋପ କରି ଯାହା କୃପା କଲ ତାହା ଶେଷ ଶିବ ନ ପାଇଲେ ଭାଳି
ଅଧିକ ମୁକୁଟେ ବାନ୍ଧିଲ ପ୍ରକଟେ କୁଙ୍କୁମଟ ପ୍ରାୟେ ରଥାଙ୍ଗଚିହ୍ନ ।
ଏବେ କ୍ଷମ ଦୟାନିଧି କି ଶୁଖିଲା ମୋହ କର୍ମନିକି ହେଲା ହୀନ ॥
ମୁଁ ଯେ ଅପରାଧ ବୃକ୍ଷେ ଆରୋହିଛି ତଳେ ଦୁଃଖଜଳ ଅଛି ଘୋଟି ॥
ଏତେ ଆପଦରେ ନିର୍ଗଣକୁଠାରେ ତୁମ୍ଭେତ ମୂଳ ଦେଉଛ କାଟି ॥
ତେବେ କ୍ଷମାଶୀଳ ହୃଦ ହେଲା ଶିଳ କେମନ୍ତେ ଦମ୍ଭ ରଖିବ ଆଉ
ନ ଜାଣି ଅପରାଧ ପ୍ରଭୁ କଲେ କ୍ରୋଧ ମୁଁ ଯେ କାହାକୁ କହିବ ଆଉ
ଭୃତ୍ୟ ନ ଜାଣଇ ଅପରାଧ କରଇ ପ୍ରଭୁ କୋପ ଦୁଇକଥା ସରି ।
ଏତ ନ ଜାଣିଲା ସେ କୋପେ ମାଇଲା ନନ୍ଦିତପଣ କି ହେଲା ହରି ।
ତୁମ୍ଭେ ଜଗନ୍ନାଥ ମୁହିଁ ଯେ ଅନାଥ ହୋଇ ଜଗତଭିତରେ ଜଣେ
ଏହି ନାମରେ ଯେ ଭରସା କରିଛି ପୁଣି ଅଭରସା ହୋଏ ମନେ ॥



ଯେଣୁ ଜଗବନ୍ଧୁ ଥାଉଁ ମୁଁ ଅବନ୍ଧୁ ହୋଇ ନ ଶୁଣୁଛ ଏଣୁ କରି ।
ତୁମ୍ଭ ସେହି ନାମ ପତିତପାବନ କେତେ ଲାଜ ନ ନିବାରେ ହରି ॥
ତୁମ୍ଭ କରେ ଯାହା ଧରିଅଛ ତାହା ପୂର୍ବତେଜ ନାଶ ହେଲା କି
ଦୂରେ ଜଣାଇଲେ ନିକଟେ ଶୁଭିବ ଏଭାବ ଅନ୍ତର ହେଲାଟିକି ॥
ଗତି ଅନୁକମ୍ପା ଛାଡ଼ିଲ କି ଶମ୍ପା ନ ଥିଲା ଶରଦଘନ ପରି ।
ପୂର୍ବଦୁଃଖ ନାଶ ଶୁଭୁଅଛି ଘୋଷ ମୋ ମନ ଚାତକ ଆଶା ଧରି ॥
ସେ ନ ବରଷିଲା ଏ ପ୍ରାଣେ ନାଶିଲା କାଳ ବଳେ ଆଶା ମଉଳାଇଲା
ନିତ୍ୟାନନ୍ଦ ବୋଲେ କଷ୍ଟ ଦାବାନଳେ ଧଇର୍ଯ୍ୟପତଙ୍ଗ ହଜାଇଲା

—*—

## ଅଷ୍ଟମ ଛାନ୍ଦ ।

ଆଜ୍ଞା ଦେବ ଅବା ବିଧାତା ଲେଖିବା କପାଳକଥା ପ୍ରସିଦ୍ଧି ।
କରମକରତା କଇବଲ୍ୟଦାତା ତୁମ୍ଭେ ଯେ ବିଧାତା ବିଧି ।
ମହାପ୍ରଭୁ ହେ । ୧ ।
ତୁମ୍ଭର ଶରଣ ହୋଇ ଅକାରଣ କର୍ମ ଯେବେ ଆଦରିଲା ।
ତୁମ୍ଭ ଭୃତ୍ୟ ହୋଇ କର୍ମଦଣ୍ଡ ସହି ତେବେ ତ କିଛି ନୋହିଲା ।
ମହାପ୍ରଭୁ ହେ । ୨ ।

ପଦି

ଶୁଣିଥାଇଁ ହରି ବାଳକ ବାଳୁରୀ ଯେଉଁ କାଳେ ଧାତା ନେଲା ହରି ।
ଅଙ୍ଗୀକଲ ଜାତି ଧାତା ଗର୍ବ ହତି ତୁମ୍ଭେ ପରା ଅଛ ଏହାକରି ॥
ଆଜ୍ଞା ଦେଲେ ଗୁରୁ ଶମନ ପୁରରୁ ମଲପୁଅ କେହୁ ଦେଲା ଆଣି ।
ବରୁଣ ହାରିଲା ଗତପ୍ରାଣ ହେଲା ନନ୍ଦ କେ ଆଣିଲା ଚକ୍ରପାଣି ॥
କାଳ ହରିଥିଲା ସଇନ ଜୀଇଲା କାହାର ଆଜ୍ଞାରେ ଲଙ୍କାପୁରେ ।
ଆହୁର ବଚନ ଶୁଣିଲ ବିଧାତା ଜାତକଲ ନାଭି କମଳରେ ॥
ଏମନ୍ତ ପ୍ରଭୁର ପରି ମୁଁ ପଯ୍ୟର ସର୍ବ ଆଶା ଥୋଇ ହୁରକାର ।
ବିଗୁରଇ ତତେ କର୍ମ ହୋଇ କେତେ ତେବେ ତାହା ସୁଁ ନୋହିଲ ପାର

କଥାଏ ଅଛୁର ଧୂଳିସମ କରି ସାର ବୋଲୁଥାନ୍ତି ଗିରିମେରୁ ।
ତୁମ୍ଭପରି ନାଥ ମୋ ପରି ଅନାଥ କି ଭବେ ଅଛି କେ କୃପାମେରୁ ॥
ଅନ୍ତର୍ଯ୍ୟାମୀନାଥ ଏହା ସେ ଜାଣିବେ ମୋ ମନେ ପ୍ରତ୍ୟୟ ହେଉ ନାହିଁ
ମୋ କଥା ଗୋଚର ହେଲେ ଚକ୍ରଧର ଏ ଦଶା ଆଉ ଥାଆନ୍ତା କାହିଁ
କଣ୍ଠ ଗତପ୍ରାଣ ହେଲା ଠାରେ ତାଣ ପ୍ରଭୁପଣ ଟେକ ନ ରଖିଲ ।
ଦୋଷ କଲି କେତେ ତାହା ଯେନ ଚିତ୍ତେ ବିପଦ କାଣ୍ଡକୁ ସଳଖିଲ ॥
ପ୍ରଭୁପଣପଣ କରନ୍ତି ଯେ ଦୋଷ ଦଣ୍ଡଦେଇ ତାରିବାର ଧର୍ମ ।
ଅତହୁଁ ନାରାୟଣପଣ କରି ନାଶ କଲେ କି ନୁହଇ ଏ ଅଧର୍ମ ॥
ରାସକ୍ରୀଡ଼ାଦନେ ବରଜକାନନେ ଗୋପୀସମୂହ ଗରବ ଜାଣି ।
ଦୁଃଖଦେଇ କେତେ ସୁଖଦେଲ ପେତେ ତାହାଙ୍କେ କହିବ ବେଣୁପାଣି
ବୀରହନୁମାନ ଗରବଗଞ୍ଜନ ମଲ୍ଲ ଶିଳଦେବା ଦୁଃଖୁ ରଖି ।
କହେ ନିତ୍ୟାନନ୍ଦ ଯଶଗୁଣଚନ୍ଦ୍ର ସ୍ମରନ ହୋଇଲା ପଦ୍ମଆଖି ॥

—※—

## ନବମ ଛାନ୍ଦ

ଥୋକାଏ ସାମନ୍ତ କହିଲେ ବହୁତ ସୁଖ ନ ମଣନ୍ତି ଚିତ୍ତେ ।
ନ ଜଣାଇଲେ ଭୃତ୍ୟ କେହ୍ନେ ତରିବ ଅବଧାନ କର ଏତେ ।
ମହାପ୍ରଭୁ ହେ ।୧।
ଯେଣୁ ଏ ମନ ବଜ୍ରକୀପ୍ରାୟେ ଥୟ ନୋହିଲା ତୁମ୍ଭ ପାଦରେ ।
ତେଣୁ ନ ରସିଲା ଚତୁର୍ବର୍ଗ ଦେଲା ନାମ ଗୁଣମାନଙ୍କରେ ।
ମହାପ୍ରଭୁ ହେ ।୨।

### ପଦି

ତହୁଁ ଜଣାଇଲି ଭୟ ଉପେକ୍ଷିଲ ନ କହିଲେ ଯାଉଅଛୁ ଭାସି ।
ଏ ଯେ ଭବଜଳ ନାହିଁ ଥଳ କୂଳ ଏଥି ଭଙ୍ଗା ନାବେ ଅଛୁ ବସି ॥
କାମ କ୍ରୋଧ ବେନି ଲହରୀକି ଜାଣି ପ୍ରବଳେ ଠେଲୁଛି ଘନଘନ ।
ରାଗ ହଂସା ଭ୍ରମ ଭଉଁରି ଭ୍ରମାଇ ବୁଡ଼ାଇ ଦେବାକୁ ତାଙ୍କ ମନ ॥



ତହୁଁ ଲୋଭ ମୋହ ବେନି କରି ବାଦ କୁମ୍ଭୀରରୂପେ ଅଛନ୍ତି ଜଗି
ଉପରେ କାଳ ମହାବଳ ଝାମ୍ପଇ ବେଳକୁବେଳ ହୋଇଣ ରାଗୀ ॥
ଗରଜିଲା ଅଘ ମଙ୍ଗପରେ ନାଗ ଠେକ ବହିଛନ୍ତି ଠେକି ଫଣି ।
ଧର୍ମ ନ କରିବା ଅଧର୍ମ କରିବା ଛଳ ଫୁଟି ପଶୁଅଛି ପାଣି ।୮।
ଚିନ୍ତାମଣି ନାଥ ଏଥି ଛାଡ଼ିଲିତ ହାତ ହେବା ପଥ ଆବୋରିଲି ।
କରୁଣା ଶରଣ ହେବାର ଅଜ୍ଞାନ ମୋହରେ ପଡ଼ିଣ ପାଶୋରିଲି ॥
ତୁମ୍ଭେ ଗୁରୁରୂପେ ସଂସାରେ ପ୍ରଚରି ସେ ପାଦ ଆହୁଲା ଛାଡ଼ିଦେଲି
ବିପଦ ଦଣ୍ଡିବା ମନ ନ ଛାଡ଼ିବା ପ୍ରବଳପବନେ ଛନ୍ନ ହେଲି ॥
ଏଥିପାଇଁ ପ୍ରଭୁ ଗୁହାରି କରୁଛି କରୁଣା ବୋଇତ ମେଲି ଧରି ।
ଏତେ ପ୍ରମାଦକୁ ତୁମ୍ଭେ ଯେ ସମର୍ଥ ଦୁଃଖପାରିବାରୁ ପାରିକର ॥
ତୁମ୍ଭ ନାମଧନେ ଧନିକ ହୋଇବି ମନ ନ ବୁଡ଼ିବ କାମନାରେ ।
ପାଦପଦ୍ମରସେ ନିଷ୍ଟଳ ମଧୁପ ହୋଇ ଆସୁଥିବ ମତ୍ତଭରେ ॥
ସାଧୁ ପାଦରଜେ ଲୋଭ ବଢ଼ୁଥିବ ତୁମ୍ଭ ଦରଶନେ ହୋଇ ଲୋଭୀ
ତୁମ୍ଭେ ସର୍ବହୃଦେ ବିଜୟ କରିବ ଧ୍ରୁବ କରି ଜାଣିଥିବି ଭାବି ।୯।
ଶ୍ରୀଗୁରୁଚରଣ ଆଶ୍ରୟ କାରଣ ଏହା ନ ଛାଡ଼ିବ ଦଣ୍ଡେ କରି ।
କହେ ନିତ୍ୟାନନ୍ଦ ଶରଣ ଗୋବିନ୍ଦ ପରମାନନ୍ଦ ଆନନ୍ଦ ହରି ।୧୦।

—※—

## ଦଶମ ଛାନ୍ଦ ।

ଏବେ କହୁଅଛି ଶୁଣ ସାଧୁଜନେ ମୁଁ ଯେ ତୁମ୍ଭର ଶରଣ ।
ଆରତଧ୍ୱଂସନ ପ୍ରଭୁଙ୍କ ଛାମୁରେ ହୋଇଲା ଏହି ଜଣାଣ ।
ମହାପ୍ରଭୁ ହେ । ୧ ।
ତୁମ୍ଭେ କୃପା କଲେ ଲାଗିବ ଜଣାଣ ପ୍ରଭୁ ପାଦପଦ୍ମରେ ।
ଅବଶ୍ୟ ହରିବେ ଅବଶ୍ୟ ହରିବେ ମୋ ଦୁଃଖ କୃପାକରରେ ।
ମହାପ୍ରଭୁ ହେ । ୨ ।

ପରମମଙ୍ଗଳ ନାମ ଅମଙ୍ଗଳ ନାଶନ ସୁନ୍ଦର ଅଟେ ଯାର ।
ସେ ବାଞ୍ଛା କରିବେ ସେ ବାଞ୍ଛାକରିବେ ଅଘନାଶନ କମଳାବର ।
ଅତସୀକୁସୁମସୁନ୍ଦର ଯେ ଶ୍ୟାମବରନ ବଶାବ ପଦ୍ମଡ଼ୋଳା ।
କଟିତଟେ ବାସ ତଡ଼ିତର ବାସ କଦମ୍ବମାଳା ହୃଦରେ ଖେଳା ।୩
ଏମନ୍ତ ପ୍ରଭୁ ମୋ ଦୁର୍ଗତି ହରିବେ ଦୁର୍ଗତି ହରିବେ ଧ୍ରୁବ କରି ।
ଗୋପୀଙ୍କ ରଙ୍ଗରେ ଗୋପାଳପୁରରେ ଲବଣୀସର ଯେ କଲେଚୋ
ଅପ୍ରାଧ ହରିବେ ଅପ୍ରାଧ ହରିବେ କରିବେ କରୁଣା ପରସିଦ୍ଧି ।
ପୂତନାକୁ ଷମା ଦୁର୍ଗତିରୁ କଲେ ଏମନ୍ତ କରୁଣା ଜଳନିଧି । ୪ ।
ଅହେ ସାଧୁନରେ ବିଗୁର ମନରେ ଏମନ୍ତ ପ୍ରଭୁ ଦେଖିଛ କାହିଁ ।
ବିଷପାନ କଲ ଅମୃତ ଖାଇଲ ପୁରରେ ତାକୁ ରଖିଲେ ନେଇ ।
ଯେତେକ ଅସୁରେ ମାରିବା ବିଗୁରେ ଆସନ୍ତି ବଇରଭାବ ଧରି ।
ତାଙ୍କୁ ଦୟା କରି କରୁଣାରେ ତାରି ଆନନ୍ଦେ ବସାନ୍ତି ସ୍ୱର୍ଗପୁରୀ ।୫
ମନରେ ନ ଥାଇ ଚତୁର୍ବର୍ଗ ଦେଇ ଏମନ୍ତ ସାମନ୍ତପଣ ଯାର ।
ତା ପାଦେ ନ ରସି କାଳମୋହପାଶୀ ବାନ୍ଧନେବନ୍ଧ ହୁଅନ୍ତି ନର ।
ଅହେ ମହାବାହୁ ଏତେ ଆଜ୍ଞାହେଉ ଏ ଯେ ମୋର ବିଘ୍ନଛନ୍ତି ଯେତେ
ବିପଦ-ବନକୁ ଧରିନେଇ ମୋତେ ନରତେ ଡକାକରନ୍ତି କେତେ
କ୍ଷଣେ ଦଣ୍ଡେ କରି ତୁମ୍ଭ ନାମ ଧରି ତରିବା ବିଗୁର କଲେ ମନେ ।
ମନମତ୍ତ କରି ମନମତ କରି ଧରିଣ ଭ୍ରମାନ୍ତି ଅନୁକ୍ଷଣେ । ୬
ଅହେ ଭଗବାନ ପତିତପାବନ ଅଘତଧ୍ୱଂସନ ବିଘ୍ନହର ।
କହେ ନିତ୍ୟାନନ୍ଦ ହେ ପ୍ରଭୁ ଗୋବିନ୍ଦ ଜଣାଣଅପ୍ରାଧ କ୍ଷମକର ।।

ସମାପ୍ତ ।



ଓଡ଼ିଶା କୋହିନୂର ପ୍ରେସକଟକରେ
ଏସ୍ ଅମିନୁଲ ଅଇ, ଙ୍କ ଦ୍ୱାରା ମୁଦ୍ରିତ